ପ୍ରତ୍ୟୟ

(Journal of Odia Language, Culture and Science)

JournalHomepage:http://cphfs.in/research.php

# ସାମାଜିକ-ଗଣମାଧ୍ୟମ ଓ ଆଜିର ଯୁବସମାଜ

**ଡକ୍ଟର ରୁଦ୍ରନାରାୟଣ ମହାପାତ୍ର**

ଆସିଷ୍ଟାଣ୍ଟ ପ୍ରଫେସର, ସ୍ନାତକତ୍ତୋର ଓଡ଼ିଆ ବିଭାଗ,

ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର

Email: rudrautkal@gmail.com

ସଂକ୍ଷିପ୍ତସାର: ଆଜିର ଦୁନିଆରେ ସବୁଠୁଁ ଅଧିକ ଗତିଶୀଳ ଓ ବହୁମୁଖୀ ବିଭାଗ ହେଉଛି 'ଯୋଗାଯୋଗର ଧାରଣା ଏବଂ ପ୍ରକ୍ରିୟା' । ଯୋଗାଯୋଗର ପ୍ରତ୍ୟେକ ଦିଗ ସମୟର କାଳଖଣ୍ଡରେ କ୍ରମେ ପରିବର୍ତ୍ତିତ ହେଉଛି ବା ବିକଶିତ ହେଉଛି । ଯଦିଓ ଇଣ୍ଟରନେଟ୍ ଏକ ଗଣମାଧ୍ୟମ କି ନୁହେଁ ତାହା ଉପରେ ବିଭିନ୍ନ ବିବାଦ ରହିଛି, ଏହା ସତ୍ତ୍ୱେ ବି ନିକଟ ଅତୀତରେ ଏହାର ଉପଭୋକ୍ତାଙ୍କ ସଂଖ୍ୟାରେ ଯେଉଁ  ଆଶାତୀତ ବୃଦ୍ଧିପାଇଛି, ତାହା ନିଶ୍ଚୟ ଅବିଶ୍ୱସନୀୟ ଓ ଆଲୋଚନାର ବିଷୟ । ଏହା ସଂପ୍ରତି ଏକ ନବ୍ୟ ଗଣମାଧ୍ୟମ ଏବଂ ଅନରୂପଭାବେ ଶକ୍ତିଶାଳୀ ମଧ୍ୟ। ଏହା ବହୁଭାବେ ସମାଜର ପ୍ରତ୍ୟେକ ବର୍ଗଙ୍କୁ ପ୍ରଭାବିତ କରିଛି । ପୁନଃ ଆମ ସମାଜର ଯୁବପିଢି ସମୟର ଆହ୍ୱାନରେ ଏହାପ୍ରତି ବହୁଭାବେ ଆସକ୍ତ ଓ ନିର୍ଭରଶୀଳ ହୋଇପଡ଼ିବାରୁ, ସାମାଜିକ ଗଣମାଧ୍ୟମ ମଧ୍ୟ ଉପଭୟ ସକାରାତ୍ମକ ଓ ନକାରାତ୍ମକ ଉଭୟ ଦିଗରୁ ଯୁବସମାଜକୁ ପ୍ରଭାବିତ କରିଛି । ଏହି ପ୍ରବନ୍ଧରେ ସାଂପ୍ରତିକ ଯୁବସମାଜକୁ ନବ୍ୟ ସାମାଜିକ ଗଣମାଧ୍ୟମର ବହୁମୁଖୀ ଦିଗ ଓ ବିଶେଷତ୍ୱ କିପରି ପ୍ରଭାବିତ କରୁଛି, ତାହାର ଆଲୋଚନା କରାଯାଇଛି ।

ପ୍ରମୁଖ ଶବ୍ଦ (Keywords) -  ସାମାଜିକ ଗଣମାଧ୍ୟମ, ଯୁବସମାଜ, ଫେସ୍‌ବୁକ୍, ଇଣ୍ଟରନେଟ୍, କମ୍ପ୍ୟୁଟର, ସୋସିଆଲ୍ ମିଡିଆ

## I. ଉପକ୍ରମ

ଗଣମାଧ୍ୟମ କ୍ଷେତ୍ରରେ ସର୍ବାଧୁନିକ ବ୍ୟବସ୍ଥା ହେଲା ଇଣ୍ଟରନେଟ୍ । ଆଜି ଏକବିଂଶ ଶତାବ୍ଦୀରେ ସାରା ପୃଥିବୀର ଖବର ଓ ଯେକୌଣସି ବିଷୟରେ ତଥ୍ୟ ଇଣ୍ଟରନେଟ୍ ଜରିଆରେ ମିଳିପାରୁଛି । ଇଣ୍ଟରନେଟ୍ ବା ନେଟ୍ ହେଉଛି କମ୍ପ୍ୟୁଟର ନେଟ୍‌ୱାର୍କ ଗୁଡ଼ିକର ଏକ ବିଶ୍ୱବ୍ୟାପି ବ୍ୟବସ୍ଥା । ଏବେ ପ୍ରାୟ ସବୁ ଟେଲିଭିଜନ୍ ଚ୍ୟାନେଲ୍ ମଧ୍ୟ ନିଜ କାର୍ଯ୍ୟକ୍ରମଗୁଡ଼ିକୁ ଇଣ୍ଟରନେଟ୍ ଜରିଆରେ ଦେଖେଇବାର ବ୍ୟବସ୍ଥା କରୁଛନ୍ତି । ୨୦୧୬ ସୁଦ୍ଧା ଭାରତରେ ୪୬ କୋଟି ଲୋକ ଇଣ୍ଟରନେଟ୍ ବ୍ୟବହାର କରୁଛନ୍ତି ଏବଂ ଆମ ଦେଶରେ ଇଣ୍ଟରନେଟ୍ ବ୍ୟବହାର କାରୀଙ୍କ ସଂଖ୍ୟା ଦ୍ରୁତଗତିରେ ବଢୁଛି । ପରବର୍ତ୍ତୀ ସମୟରେ ଇଣ୍ଟରନେଟ୍‌ର ବ୍ୟାପକ ପ୍ରସାର ଓ ପ୍ରଚଳନ ସାମାଜିକ ଗଣମାଧ୍ୟମ (Social Network) କୁ ଲୋକଙ୍କ ନିକଟରେ ପହଞ୍ଚାଇଛି ଓ ତାହାର ଲୋକପ୍ରିୟତାକୁ ବି ବଢାଇଛି। ସଂପ୍ରତି ସାମାଜିକ ଗଣମାଧ୍ୟମର ପରିସର ଭିତରେ ବହୁ ସାମାଜିକ ନେଟୱାର୍କ ସାଇଟ୍ ଅଛି । ତେବେ ସେଗୁଡ଼ିକ ଭିତରୁ ଭାରତରେ ଫେସ୍‌ବୁକ୍ (Facebook), ଟୁଇଟର୍ (Twitter), ସ୍ନାପ୍‌ଚାର୍ଟ (Snapchat) ଓ ଇନ୍‌ଷ୍ଟାଗ୍ରାମ୍ (Instagram) ଆଦି ବହୁଭାବେ ଯୁବସମାଜକୁ ଆକର୍ଷିତ କରିଛନ୍ତି । ପୁନଃ ସୋସିଆଲ ମିଡିଆର ଲୋକପ୍ରିୟତା ସାରା ବିଶ୍ୱରେ ଆଶାତୀତ ବଢ଼ିଥିବାରୁ ଏହି ନେଟୱାର୍କଗୁଡ଼ିକ ଏବଂ ଯୁବକସମାଜକୁ କିପରି ପ୍ରଭାବିତ କରୁଛି, ତାହା ଉପରେ ବହୁ ଗବେଷକଙ୍କ ମିଶ୍ରିତ ଭାବନା ମଧ୍ୟ ଆସିଛି । ତେବେ, ଏଇଠି ପ୍ରଥମେ ପ୍ରଶ୍ନ ଆସୁଛି ଯେ, ସୋସିଆଲ ମିଡିଆ ଯୁବସମାଜକୁ କିପରି ପ୍ରଭାବିତ କରୁଛି? ଅତଏବ ଏହି ପ୍ରଶ୍ନର ଉତ୍ତର ପାଇବାକୁ ହେଲେ ଆମକୁ ସାମାଜିକ ଗଣମାଧ୍ୟମ କିପିରି ଯୁବପିଢ଼ି ଉପରେ ଉଭୟ ସକରାତ୍ମକ ଏବଂ ନକାରାତ୍ମକ ଦିଗରୁ ପ୍ରଭାବିତ କରୁଛି, ତାହାକୁ ଆଲୋଚନା କରିବାକୁ ହେବ। ପ୍ରଥମେ ସାମାଜିକ ଗଣମାଧ୍ୟମର ସକାରାତ୍ମକ ଦିଗକୁ ଆଲୋଚନା କଲେ, ସୋସିଆଲ ମିଡିଆ ଯେ ବିଶ୍ୱକୁ ଏକ ବିଶ୍ୱ ଗ୍ରାମରେ ପରିଣତ କରିଛି, ଏହାକୁ ଆସ୍ୱୀକାର କରାଯାଇପାରିବ ନାହିଁ । ସଂପ୍ରତି ଏକବିଂଶ ଶତାବ୍ଦୀର ଯୁବକମାନେ ପୃଥିବୀର ଯେକୌଣସି କୋଣ ଅନୁକୋଣରେ ରହିଥିବା ବ୍ୟକ୍ତିଙ୍କ ସହିତ ଏହା ମାଧ୍ୟମରେ ଅନାୟାସରେ ଯୋଗାଯୋଗ ରଖିପାରୁଛନ୍ତି। ଅନୁରୂପଭାବେ ଏହାର ନକାରାତ୍ମକ ଦିଗପ୍ରତି ସଚେତନ ନହୋଇ ଏହାର ମାୟାଜାଲରେ ନିଜର ସମୟ ଓ ଶକ୍ତି ଉଭୟକୁ ଅପଚୟ କରି ନିଚର ଚିନ୍ତା, ଶାନ୍ତି ଓ ସାଧନାକୁ ଧୀରେଧୀରେ ନଷ୍ଟ ବି କରି ବସୁଛନ୍ତି।

## II. ସାମାଜିକ ଗଣମାଧ୍ୟମର ସ୍ୱରୂପ ଓ ବୈଚିତ୍ର୍ୟ

ସାଧାରଣତଃ ସାମାଜିକ ଗଣମାଧ୍ୟମ ହେଉଛି ଏକ ଇଣ୍ଟରନେଟ୍ ଆଧାରିତ ପ୍ଲାଟଫର୍ମ ବା ମଞ୍ଚ, ଯେଉଁଥିରେ ପାଠ (text), ଛବି (image), ଅଡ଼ିଓ (Audio) ଭିଡ଼ିଓ (Video) ଓ ଗ୍ରାଫିକ୍ସ ଆକାରରେ ସୂଚନା ବା ଡେଟାର ବିନିମୟ ହୋଇଥାଏ। ଏହା ମାଧ୍ୟମରେ ପରସ୍ପର ଭିତରେ ବା ଗୋଷ୍ଠୀ ଭିତରେ ତଥ୍ୟ ଓ ସୂଚନାର ଆଦାନ ପ୍ରଦାନ କରିହୁଏ। ଉଭୟ ବ୍ୟକ୍ତିଗତ ସ୍ତରରେ ଓ ଗୋଷ୍ଠୀଗତ ସ୍ତରରେ ଏହା ମାଧ୍ୟମରେ ସୂଚନା ଆଦାନପ୍ରଦାନ ହୋଇଥାଏ । ତେବେ ସାମାଜିକ ଗଣମାଧ୍ୟମର ଇଣ୍ଟରାକ୍ଟିଭ ବା ପାରସ୍ପରିକ ସମ୍ପର୍କ ରକ୍ଷାର କୌଶଳ ସବୁଠୁ ଅଧିକ । ଏହି ଗଣମାଧ୍ୟମ ଏକା ସାଙ୍ଗରେ ବ୍ୟକ୍ତି ସହିତ ଓ ସମାଜ ସହିତ ବିଶ୍ୱସ୍ତରରେ ଇଣ୍ଟରନେଟ୍ ମାଧ୍ୟମରେ ତତ୍କାଳ ସମ୍ପର୍କ ରକ୍ଷା କରିପାରେ । ଏଣୁ, "Social media should not be seen primarily as the platforms upon which people post, but rather as the contents that are posted on these platforms."(**1**) ଏବଂ, 'Social media as the colonization of the space between traditional broadcast and private dyadic communication, providing people with a scale of group size and degrees of privacy that we have termed scalable sociality.'(**2**)

ପ୍ରଥମ ସ୍ୱୀକୃତିପ୍ରାପ୍ତ ସୋସିଆଲ ମିଡିଆ ୱେବସାଇଟ୍ "ସିକ୍ସ ଡିଗ୍ରୀଜ୍ (Six Degrees)" ଥିଲା ଏବଂ ଏହା 1997 ମସିହାରେ ଲୋକର୍ପିତ ହୋଇଥିଲା । ଏହା ସେତେବେଳେ ଜଣେ ଉପଭୋକ୍ତାମାନଙ୍କୁ ନିଜର ପ୍ରୋଫାଇଲ୍‌କୁ ଅନ୍ୟ ନିକଟକୁ ପଠାଇ ଅନ୍ୟ ଉପଭୋକ୍ତାମାନଙ୍କ ସହିତ ବନ୍ଧୁତା ସ୍ଥାପନ କରିବାକୁ ସକ୍ଷମ ଥିଲା । ଏହା ପରେ 1999 ମସିହା ବେଳକୁ, ପ୍ରାଥମିକ ବ୍ଲଗିଂ ସାଇଟଗୁଡିକ ସାଧାରଣ ହୋଇଗଲା, ଏବଂ ଏହା ଲୋକଙ୍କୁ ସୋସିଆଲ୍ ମିଡିଆ ପ୍ରତି ଆକର୍ଷିତ କଲା । ଏହା ପରଠାରୁ ଆଜି ସାମାଜିକ ଗଣମାଧ୍ୟମର ପହଞ୍ଚ ଯେତିକି ଯେତିକି ବଢୁଛି, ଏହାର ଉପଯୋଗକର୍ତ୍ତା ଓ ପ୍ରଶଂସକଙ୍କ ସଂଖ୍ୟା ତଦନୁରୂପେ ବଢ଼ିଚାଲିଛି। ଏବେ ବଜାରରେ ଆମେ Google, Facebook, Twitter, Orkut, Lingdin, WhatsApp, Blogging ଆଦି ଭଳି ବିଭିନ୍ନ ସାମାଜିକ ଗଣମାଧ୍ୟମ ପ୍ଲାଟଫର୍ମ (Platform) ଓ ସଫ୍ଟୱେୟାର (Software) ଦେଖିବାକୁ ପାଉଛୁ । ସାମାଜିକ ଗଣମାଧ୍ୟମରେ ପରିକଳ୍ପନା ଏହି ମାତ୍ର ୨୦ ବର୍ଷ ତଳର । ବିଶ୍ୱରେ ସାମାଜିକ ଗଣମାଧ୍ୟମର ପ୍ରଥମ ବ୍ୟବହାର ଆମେ ବର୍ଷ ୧୯୯୭ରୁ ପାଉ । ଏହା ପରଠାରୁ ଆଜି ପର୍ଯ୍ୟନ୍ତ ସମୟ ଭିତରେ ଏହା ଖୁବ୍ ଲୋକପ୍ରିୟ ହୋଇପାରିଛି । ଆହୁରି ମଧ୍ୟ ସାରା ପୃଥିବୀରେ ଏହାର ବ୍ୟବହାର କ୍ରମେ ଦ୍ରୁତଗତିରେ ବଢିବାରେ ଲାଗିଛି । ୨୦୧୬ର ମଧ୍ୟବର୍ତ୍ତୀ ସମୟ ବେଳକୁ ଭାରତରେ ପାଖାପାଖି ପନ୍ଦର କୋଟିରୁ ଊର୍ଦ୍ଧ୍ୱ ସାମାଜିକ ଗଣମାଧ୍ୟମ ବ୍ୟବହାରକାରି ଥିଲେ । ଏଥିରୁ ୧୩କୋଟି ଉପଭୋକ୍ତା ମୋବାଇଲ୍ ମାଧ୍ୟମରେ ସାମାଜିକ ଗଣମାଧ୍ୟମର ବ୍ୟବହାର କରୁଥିଲେ । ସଂପ୍ରତି ଗତ ପାଞ୍ଚ ବର୍ଷ ଭିତରେ ଏହାର ସଂଖ୍ୟା ବହୁଗୁଣିତ ହୋଇଛି।

ସାରା ପୃଥିବୀରେ ଏପରି ୨୦୦ରୁ ଅଧିକ ସୋସିଆଲ ନେଟ୍‌ୱାର୍କିଂ ସାଇଟ୍ ରହିଛି ଏବଂ ସେଥିରେ ବିଭିନ୍ନ ବିଷୟ, ବିଭାଗ ଓ ଉପବିଭାଗକୁ ଆଧାରକରି କୋଟିକୋଟି ସଦସ୍ୟ ଅଛନ୍ତି । ତେବେ ଆଜି ପୃଥିବୀରେ କିଛି ଲୋକପ୍ରିୟ ସୋସିଆଲ୍ ମିଡ଼ିଆ ଭିତରେ ଆଗଧାଡ଼ିରେ ଅଛନ୍ତି, ଫେସ୍‌ବୁକ୍ (Facebook), ହ୍ୱାଟ୍ସଆପ୍ (WhatsApp), କ୍ୟୁକ୍ୟୁ, ୱିଚାଟ୍, କ୍ୟୁଜୋନ୍, ଟମ୍ବଲର, ଇନ୍‌ଷ୍ଟାଗ୍ରାମ (Instagram), ଟ୍ୱିଟର (Twitter), ଗୁଗୁଲପ୍ଲସ୍, ସ୍କାଇପ୍ (Skype), ସ୍ନାପ-ଚାଟ୍ (Snapchat), ଲିଙ୍କଡ଼-ଇନ୍ (LinkedIn), ମାଇଁସ୍ପେଶ୍ (MySpace), ଅରକୁଟ୍, ୟୁଟ୍ୟୁବ୍ (YouTube) ଇତ୍ୟାଦି । ଆଜିକାଲିର ଯୁବପିଢ଼ି ଓ ବୁଦ୍ଧିଜୀବି ଏହିସବୁ ସୋସିଆଲ ମିଡ଼ିଆରେ ଖୁବ୍ ସକ୍ରୀୟ । ଏବେ ସାଧାରଣ ଲୋକଙ୍କ ସହିତ କ୍ରୀଡ଼ା, କଳା, ସ୍ୱାସ୍ଥ୍ୟ, ସାହିତ୍ୟ, ସମାଜ ସେବା, ସାମ୍ବାଦିକତା, ମନୋରଞ୍ଜନ, ରାଜନୀତି ଆଦି କ୍ଷେତ୍ରରେ ସକ୍ରୀୟ ଥିବା ବହୁ ସଫଳ ଓ ବିଶିଷ୍ଟ ବ୍ୟକ୍ତି ସୋସିଆଲ ମିଡ଼ିଆର ସଦସ୍ୟ । ସାମାଜିକ ଗଣମାଧ୍ୟମରେ ଏବେ ବିଭିନ୍ନ ପ୍ରସଙ୍ଗ ଉପରେ ଅନ୍ୟମାନଙ୍କର ମତାମତକୁ ପଢ଼ିହେବା ସହିତ ଯେକୌଣସି ପ୍ରସଙ୍ଗ ଉପରେ ମଧ୍ୟ ସ୍ୱାଧୀନ ମତ ପ୍ରକାଶ କରିହେଉଛି । ପୁନଃ ଉଭୟ ପରିଚିତ ଓ ଅପରିଚିତ ଉପଭୋକ୍ତା ଏଥିରେ ଯୋଡ଼ିହେବାରୁ ପୁରୁଣା ସମ୍ପର୍କକୁ ବି ଏହା ମାଧ୍ୟମରେ ଉଜ୍ଜୀବିତ କରାଯାଇପାରୁଛି । ତେଣୁ ସାମାଜିକ ଗଣମାଧ୍ୟମର ବିଶେଷକରି ସବୁବର୍ଗର ଲୋକଙ୍କୁ ବାନ୍ଧି ରଖିବା ସହିତ ସମସ୍ତ ପ୍ରକାର ଖବରକୁ ମୁହୂର୍ତ୍ତକ ମଧ୍ୟରେ ଜଣାଇବାରେ ସକ୍ଷମ ହେଉଛି। ସେହିପରି ଆଧୁନିକ ପିଢ଼ି ସୋସିଆଲ ମିଡ଼ିଆରେ ତା'ଠାରୁ କାହିଁ କେତେ ଦୂର ଦେଶବିଦେଶ ଅଜଣା ବ୍ୟକ୍ତିବିଶେଷ ସହ ଅତି ଆଦରରେ ବନ୍ଧୁତା ସ୍ଥାପନ କରି ଭାବର ଆଦାନ ପ୍ରଦାନ କରୁଛନ୍ତି । ସୋସିଆଲ ନେଟୱାର୍କର ଚାଟ୍‌ରୁମ୍ ବା ଫ୍ରେଣ୍ଡସିପ୍ ସାଇଟ୍ ମାଧ୍ୟମରେ ଦେଶ ତଥା ଦେଶ ବାହାରର କୋଣ ଅନୁକୋଣରୁ ନିଜର ମନ ମୁତାବକ ବନ୍ଧୁଙ୍କୁ ବାଛିପାରୁଛନ୍ତି।

### III. ସଂପ୍ରତି ସାମାଜିକ-ଗଣମାଧ୍ୟମର ଭୂମିକା

ସମାଜର ହିତ ଉଦ୍ଦେଶ୍ୟରେ ନିର୍ମାଣ ହୋଇ ପରିପୁଷ୍ଟ ହୋଇଥିବା ଏହି ସାମାଜିକ ଗଣମାଧ୍ୟମ ସମାଜରେ ଏବେ ଉଭୟ ଅନୁକୂଳ ଓ ପ୍ରତିକୂଳ ପ୍ରଭାବ ପକାଉଛି । ଏହି ପ୍ରଭାବ ଆଜିର ସମାଜରେ ପ୍ରତ୍ୟକ ସ୍ତର ଯେପରି ଶିକ୍ଷା, ସ୍ୱାସ୍ଥ୍ୟ, ସାମାଜିକ ସଂସ୍କାର ଓ ଜାଗରୁକତା ଆଦି ବିଭିନ୍ନ କ୍ଷେତ୍ରରେ ଦେଖିବାକୁ ମିଳୁଛି। ତେବେ ଏହା ଏକଦିଗରୁ ଯେତିକି ଭଲ ପ୍ରଭାବ ପକାଉଛି ଅନୁରୂପ ଭାବେ ଖରାପ ପ୍ରଭାବ ମଧ୍ୟ ପକାଇଛି। ସାମାଜିକ ଗଣମାଧ୍ୟମର ପ୍ରମୁଖ ଅନୁକୂଳ ପ୍ରଭାବ ହେଉଛି ଏହାର ସଂଯୋଜ୍ୟତା ବୈଶିଷ୍ଟ୍ୟ। ଏହାମାଧ୍ୟମରେ ଯେକୌଣସି ସମୟର ବ୍ୟକ୍ତି ଯେକୌଣସି ସ୍ଥାନର

ବ୍ୟକ୍ତି ଯେକୌଣସି ସମୟରେ ପରସ୍ପର ସହିତ ସଂପର୍କ ସ୍ଥାପନ କରିପାରୁଛନ୍ତି, ନିଜର ଭାବ ଓ ଅନୁଭବକୁ ପରସ୍ପର ସହିତ ବାଣ୍ଟୁଛନ୍ତି, ପରସ୍ପର ସହିତ ବାର୍ତ୍ତାଳାପ କରୁଛନ୍ତି । ଅର୍ଥାତ୍ ଏହି ସାମାଜିକ ଗଣମାଧ୍ୟମ ଆମର ଶିକ୍ଷା, ସ୍ୱାସ୍ଥ୍ୟ, ବାଣିଜ୍ୟ, ସାମାଜିକ ଜୀବନଧାରା ସବୁକିଛିକୁ ଅନୁକୂଳ ଲାଭ ପ୍ରଦାନ କରିଛି। ଏହି ପ୍ରଭାବରୁ କେତୋଟିକୁ ଏଠାରେ ଉପସ୍ଥାପନ କରାଯାଇପାରେ।

## IV. ସାମାଜିକ ଗଣମାଧ୍ୟମର ଅନୁକୂଳ ପ୍ରଭାବ

ସୋସିଆଲ୍ ନେଟୱାର୍କିଂ ସାଇଟଗୁଡିକ ସଂପ୍ରତି ଜାଗ୍ରତ ସମସ୍ୟା ଉପରେ ଆଲୋଚନା ପାଇଁ ସୁବୃହତ୍ ପ୍ଲାଟଫର୍ମ ପ୍ରଦାନ କରୁଛନ୍ତି । ପୁନଃ ଏହି ସାମାଜିକ ନେଟୱାର୍କିଂର ବ୍ୟବହାର ଆଜି ଶିଶୁ ଏବଂ କିଶୋରମାନଙ୍କ ପାଇଁ ଏକ ସାଧାରଣ କାର୍ଯ୍ୟକଳାପରେ ପରିଣତ ହୋଇଛି । ଏହି ସାଇଟଗୁଡିକ ଆଜିର ଯୁବକମାନଙ୍କୁ ମନୋରଞ୍ଜନ ଏବଂ ଯୋଗାଯୋଗ ପାଇଁ ଏକ ମାଧ୍ୟମ ପ୍ରଦାନ କରୁଛି, ଏବଂ ଏଗୁଡ଼ିକର ଚାହିଦା ଓ ଉପଯୋଗିତା ମଧ୍ୟ ବହୁଭାବେ ବୃଦ୍ଧି ପାଇଛି । ସୋସିଆଲ୍ ନେଟୱାର୍କିଂ ସାଇଟ୍‌ଗୁଡ଼ିକର ଅନେକ ବୈଶିଷ୍ଟ୍ୟ ମଧ୍ୟ ସାପ୍ରତିକ ଯୁବପିଢ଼ିକୁ ବହୁ ସକରାତ୍ମକ ଦିଗ ପ୍ରଦାନ କରୁଛି । ଏକ ସର୍ଭେରୁ ଜଣାପଡ଼ିଛି ଯେ ପାଖାପାଖି ୫୪% କିଶୋରକିଶୋରୀଙ୍କୁ ତାଙ୍କର ଅସୁବିଧା ସମୟରେ ସାମାଜିକ ଗଣମାଧ୍ୟମ ସାହାଯ୍ୟ କରିଛି ଏବଂ ପାଖାପାଖି 57% ଯୁବକଯୁବତୀ ସୋସିଆଲ ନେଟୱାର୍କିଂ ସାଇଟ୍ ମାଧ୍ୟମରେ ତାଙ୍କର ବନ୍ଧୁ ନିର୍ମାଣ କରିଛନ୍ତି । (3)

(କ) ସାମାଜିକ ଗଣମାଧ୍ୟମ ଲୋକଙ୍କ ସହ ପାରସ୍ପରିକ ଯୋଗସୂତ୍ର ରକ୍ଷା କରିବାରେ ଏକ ଭଲ ମାଧ୍ୟମ । ସମାନ ମାନସିକତାର ବ୍ୟକ୍ତି, ପରସ୍ପରକୁ ପୂର୍ବରୁ କେବେ ଭେଟି ନ ଥିଲେ ବି ଏହା ଜରିଆରେ ଯୋଗସୂତ୍ର ରକ୍ଷା କରିପାରୁଛନ୍ତି ।

(ଖ) ଫେସ୍‌ବୁକ୍ ଭଳି ସାମାଜିକ-ଗଣମାଧ୍ୟମ ନୂଆ ନୂଆ ବନ୍ଧୁ ସୃଷ୍ଟି କରିବା ସହିତ ପୁରୁଣା ବନ୍ଧୁଙ୍କୁ ମଧ୍ୟ ଗୋଟିଏ ମଞ୍ଚକୁ ଆଣିପାରୁଛି ।

(ଗ) ଆଜିର ସାମାଜିକ-ଗଣମାଧ୍ୟମ ଶିକ୍ଷା କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣିଛି । ଦେଶ ବିଦେଶର ଛାତ୍ର ଓ ଶିକ୍ଷକ ପରସ୍ପର ସହିତ ସମ୍ପର୍କ ରଖି ଉପକୃତ ହେଉଛନ୍ତି । ଭିଡିଓ କନ୍‌ଫରେନ୍ସ, ଅନ୍‌ଲାଇନ୍ ଉପସ୍ଥାପନ, ଚାଟିଂ ଓ MOOCs ଭଳି ଅନ୍‌ଲାଇନ୍ ଶିକ୍ଷା ଆଜି ସାମାଜିକ ଗଣମାଧ୍ୟମ ପାଇଁ ସକ୍ଷମ ହୋଇଛି ।

(ଘ) ସାମାଜିକ - ଗଣମାଧ୍ୟମ ବି କୌଣସି ସଙ୍କଟ ସମୟରେ ତା'ର ଉପଭୋକ୍ତାକୁ ନିକଟସ୍ଥ ସମ୍ପର୍କୀୟଙ୍କ ସହିତ ସମ୍ପର୍କ ସ୍ଥାପନ କରିବାରେ ସାହାଯ୍ୟ କରୁଛି ।

(ଙ) ସାମାଜିକ - ଗଣମାଧ୍ୟମ ମାଧ୍ୟମରେ ଦେଶ ବିଦେଶରେ ସମ୍ବାଦ ଏବଂ ଏଥିପ୍ରତି କ୍ରିୟା ଓ ପ୍ରତିକ୍ରିୟା ଲୋକଙ୍କ ନିକଟରେ ପହଞ୍ଚିପାରୁଛି ।

(ଚ) ସାମାଜିକ - ଗଣମାଧ୍ୟମ ମାଧ୍ୟମରେ ଏବେ ଅନ୍‌ଲାଇନ୍ ବ୍ୟବସାୟ, ଇ-ମାର୍କେଟିଂ ଓ ନେଟୱାର୍କ ମାର୍କେଟିଂର ବ୍ୟାପକ ପ୍ରଭାବ ଏବେ ପୃଥିବୀର ଅର୍ଥନୀତି ଉପରେ ପ୍ରଭାବ ପକାଉଛି ।

## V. ସାମାଜିକ ଗଣମାଧ୍ୟମର ପ୍ରତିକୂଳ ପ୍ରଭାବ

ବିପରୀତ ଦିଗରୁ ବିଚାରକଲେ, ଇଣ୍ଟରନେଟ୍ ହେଉଛି ଏକପ୍ରକାର ଅନିୟନ୍ତ୍ରିତ ଦୁନିଆ ଯେଉଁଥିରେ କୌଣସି ପ୍ରକାରର ନୈତିକତା କିମ୍ବା ନିୟମ ପାଳନ କରିବାକୁ କିଛିଟା ବାଧ୍ୟବାଧକତା ଥିଲେ ବି, ବହୁଭାବେ ସବୁ ନିୟମକୁ ପାଳନ କରିବା ଉପଭୋକ୍ତା, ନିର୍ମାତା ଓ ନିୟନ୍ତ୍ରକଙ୍କ ସଭିଙ୍କ ପକ୍ଷ୍ୟରେ ସବୁ ନିୟମକୁ ମାନିବା ସମ୍ଭବ ହୁଏନାହିଁ । ଏଣୁ ଆଜିର ଯୁବକମାନେ ବହୁଭାବେ ନିଜର ବିକଶିତ ବୟସର ଯଥେଷ୍ଟ ପୂର୍ବରୁ ହତ୍ୟା, ଦୁର୍ଘଟଣା, ବଳାତ୍କାର, ବନ୍ଧୁକରୁ ଗୁଳି, ହିଂସା, ପାଟିତୁଣ୍ଡ, ନଗ୍ନତା ଏବଂ ସ୍ପଷ୍ଟ ଯୌନତା ଆଦି ବିଷୟବସ୍ତୁର ଭିଡିଓ ଚିତ୍ରର ଓ ଶବ୍ଦର ସମ୍ମୁଖୀନ ହେଉଛନ୍ତି । ଏହି ସମସ୍ତ ପ୍ରକାରର ବିଷୟବସ୍ତୁ ଯୁବକମାନଙ୍କ କ୍ଷେତ୍ରରେ ମଞ୍ଜିଭଳି ପୋତି ହୋଇ ରହୁଛି ଏବଂ ଦୀର୍ଘ ସମୟ ଧରି ଏହାକୁ ବାରମ୍ବାର ସମ୍ମୁଖୀନ ହୋଇ ଯୁବକଟି ଯଥାର୍ଥ ବୟସର ଯଥେଷ୍ଟ ପୂର୍ବରୁ ଅର୍ଥାତ୍ କିଶୋର ବା ଶିଶୁ ବୟସରୁ ଗମ୍ଭୀର ମାନସିକ ଅବସାଦର ସମ୍ମୁଖୀନ ହେଉଛି । ଏଥିରୁ ସେମାନଙ୍କ ଭିତରେ ଆକ୍ରମଣାତ୍ମକ ଚିନ୍ତା ଏବଂ ଭୟର ବିକାଶ ଘଟୁଛି । ସେମାନେ ଯାହାକିଛି ସାମାଜିକ ଗଣମାଧ୍ୟମରୁ ଦେଖୁଛନ୍ତି ତାହା ତାହା ସଂପୂର୍ଣ୍ଣ ସତ୍ୟ ସବୁ ସମୟରେ ହୋଇନଥିଲେ ବି ଏହା ସେମାନଙ୍କ ମନରେ ପଞ୍ଜିକୃତ ହୋଇ ରହିଯାଉଛି, ଏବଂ ସମଗ୍ର ଦୁନିଆ ଯେ ଏକ ନକାରାତ୍ମକ ସ୍ଥାନ ଏହାର ବିଶ୍ୱାସ ସେମାନଙ୍କ ଭିତରେ ତିଆରି ହେଉଛି । ଏହା ବ୍ୟତିତ, ସାମାଜିକ ଗଣମାଧ୍ୟମ -

(କ) ବହୁ ଭାବରେ ଯୁବକଯୁବତୀଙ୍କ ସମୟର ଅପଚୟ କରୁଛି ଓ ନିଶା ଓ ବ୍ୟାଧିଭଳି ଲୋକଙ୍କୁ କବଳିତ କରିଛି ।

(ଖ) ଯୁବପିଢିଙ୍କ ମଧ୍ୟରେ ଅବସାଦ ଆଣୁଛି ।

(ଗ) ଏହା ଯବପିଢି ଓ ବାସ୍ତବ ସଂପର୍କ ଭିତରେ ଦୂରତା ବଢ଼ାଉଛି

(ଘ) ବାସ୍ତବ ଖୁସିଠାରୁ ଦୂରେଇ ଦଉଛି ।

(ଙ) ବହୁ ସମୟରେ ବିବାଦ ସୃଷ୍ଟି କରୁଛି ।

(ଚ) ଏହା ଏବେ ଏକ ଭ୍ରମାତ୍ମକ ତଥ୍ୟ ପରିବେଷଣର ମାଧ୍ୟମ ହୋଇଛି ।

(ଛ) ଗୋପନୀୟ ତଥ୍ୟର ପ୍ରକାଶନରୁ ଅସୁରକ୍ଷା ବଢୁଛି ।

ଏହା ବ୍ୟତିତ ସାଇବର ଶୋଷଣ, କୌଣସି ବ୍ୟକ୍ତିର ଚରିତ୍ର ଉପରେ ଭ୍ରମାତ୍ମକ ପ୍ରଚାର ହେତୁ ସମ୍ମାନରେ ହ୍ରାସ ଆଦି ଭଳି କାରଣରୁ ଅନେକ ପ୍ରତିକୂଳ ପ୍ରଭାବ ଉଭୟ ବ୍ୟକ୍ତି ଓ ସମାଜ ଉପରେ ପଡୁଛି ।

ଅତଏବ ସୋସିଆଲ ମିଡ଼ିଆ ମାଧ୍ୟମରେ ସମାଜର ବହୁ ହିତ ସାଧନ କରୁଥିଲେ ବି ଅନେକ କ୍ଷତି ମଧ୍ୟ ସମାଜରେ ଘଟୁଛି । ବିଶ୍ୱ ସମୁଦାୟ ସହ ଯୋଡ଼ିହେବା ଓ ଜୀବନର ବିରକ୍ତିଭାବକୁ ଦୂରେଇବାପାଇଁ ଏହା ଏକ ଭଲ ମାଧ୍ୟମ ହୋଇଥିଲେ ବି ଏହା ଧୀରେ ଧୀରେ ସମାଜକୁ ବ୍ୟାଧି ସ୍ୱରୂପ ଗ୍ରାସ କରିସାରିଛି । ବିଶେଷ କରି ପାଠ ପଢୁଆ ପିଲାଙ୍କ ମଧ୍ୟରେ ସୋସିଆଲ୍ ମିଡ଼ିଆ

ବ୍ୟବହାର କରିବାର ପ୍ରବଣତା ବଢିଛି । ଆଧୁନିକ ପିଢ଼ି ନିଜ ଆଖପାଖରେ ଥିବା ସମପିଢ଼ିଙ୍କ ସହ ବନ୍ଧୁତା ରଖିବାକୁ ପସନ୍ଦ କରୁନାହାଁନ୍ତି । କିନ୍ତୁ ସୋସିଆଲ ମିଡ଼ିଆରେ ଦୂରଦୂରାନ୍ତର ଅଜଣା ପିଲା ସହ ବନ୍ଧୁତା କରୁଛନ୍ତି । ବ୍ୟକ୍ତିଗତ ଭାବରେ ଆଭାସି ଦୁନିଆର ବନ୍ଧୁଙ୍କୁ ଜାଣି ନଥିଲେ ବି ତାଙ୍କ ସହ ଫଟୋ, ଭିଡ଼ିଓ ତଥା ଜୀବନର ବ୍ୟକ୍ତିଗତ ଓ ଗୁରୁତ୍ୱପୂର୍ଣ୍ଣ ଘଟଣାକୁ ସେୟାର କରିବା ସହିତ ପସନ୍ଦ, ନାପସନ୍ଦ ଓ ସମସ୍ତ ପ୍ରକାର କାର୍ଯ୍ୟକଳାପକୁ ସେମାନେ ବିନା ଦ୍ୱିଧାରେ ପରସ୍ପର ମଧ୍ୟରେ ବାଣ୍ଟୁଛନ୍ତି । ଫଳସ୍ୱରୂପ ସେମାନେ ଅନାୟସରେ ଠକାମି ପଡୁଛନ୍ତି । ବୃତ୍ତିଗତ ଶିକ୍ଷାରେ ପାଠ ପଢୁଥିବା ପିଲାମାନଙ୍କୁ ସୋସିଆଲ ମିଡ଼ିଆ ଭରପୂର ଫାଇଦା ଦେଇଛି, କାରଣ ସେମାନେ ଏହିସବୁ ସାଇଟ୍‌ରେ ବନ୍ଧୁତା କରି ନିଜର କ୍ୟାରିଅରକୁ ନୂଆ ମୋଡ଼ ଦେଉଛନ୍ତି । ଅନ୍ୟଦିଗରୁ, ଅଧିକାଂଶ ଛାତ୍ରଛାତ୍ରୀ ଏହି ସାଇଟ୍‌ରେ ପାଠ ଓ କ୍ୟାରିଅର ସମ୍ବନ୍ଧିତ ବିଷୟ ଆଦାନ ପ୍ରଦାନ ବଦଳରେ ଅନ୍ୟ ଦିଗରେ ବ୍ୟସ୍ତ ରହୁଛନ୍ତି ଓ ସମୟର ଅପଚୟ କରୁଛନ୍ତି । ସେହିଭଳି ଉଗ୍ରବାଦ, ଆତଙ୍କବାଦର ପ୍ରଚାରରେ ମୁଖ୍ୟ ମାଧ୍ୟମ ସାଜିଛି ସୋସିଆଲ ମିଡ଼ିଆ। ଅପରାଧପ୍ରବଣ ଲୋକ ଏହାକୁ ମାଧ୍ୟମ କରି ବିଭିନ୍ନ ଅପରାଧମୂଳକ କାର୍ଯ୍ୟ ସହଜରେ କରିପାରୁଛନ୍ତି । ଆଜି ସୋସିଆଲ୍ ମିଡ଼ିଆ ସାମାଜିକ ପରିଚୟର ସଂଜ୍ଞାକୁ ନୂତନଭାବେ ପରିଭାଷିତ କରିଛି । ବ୍ୟକ୍ତି ତାହାର ବାସ୍ତବ ଦୁନିଆ ସାଙ୍ଗସାଥୀ, ବନ୍ଧୁବାନ୍ଧବ ଓ ସାଇପଡ଼ିଶାଙ୍କ ଠାରୁ ଦୂରେଇଯାଇ ବିଭିନ୍ନ ସୋସିଆଲ ସାଇଟ୍‌ରେ ଲାଇକ୍, କମେଣ୍ଟ ଓ ଲମ୍ବିଚାଲିଥିବା ବନ୍ଧୁ ତାଲିକା ହିଁ ସମାଜର ପରିଭାଷା ପାଲଟିଛି ।

### ଉପସଂହାର

ଅତଏବ ଟେକ୍ନୋଲୋଜିର ବିକାଶ ସହିତ ଏବେ ୱେବ୍ ଆଧାରିତ ସାମାଜିକ ନେଟୱାର୍କିଂ ସାଇଟ୍ ପ୍ରତ୍ୟେକଙ୍କ ଜୀବନର ଏକ ନିରନ୍ତର ଜୀବନଧାରାରେ ପରିଣତ ହେଲାଣି । ଗଣମାଧ୍ୟମ ଏବେ ତାହାର ପାରଂପରିକ ସ୍ୱରୂପକୁ ବଦଳାଇ ଯେତିକି ଯେତିକି ପ୍ରଯୁକ୍ତି ଓ ଇଣ୍ଟରନେଟ୍ ଉପରେ ନିର୍ଭର କରୁଛି, ଆଜିର ବ୍ୟକ୍ତି ଓ ସମାଜ ତଦନୁରୂପ ଡିଜିଟାଲ୍ ଓ ହାଇଟେକ୍ ହେଉଛି । ସଂପ୍ରତି ସାମାଜିକ ଗଣମାଧ୍ୟମର ପ୍ରଭାବ, ୱେବ୍ ଚାଟିଂ, ୱେବ୍ ଗେମ୍, ୱେବ୍ ମିଡ଼ିଆ ୱେବ୍ ବ୍ୟବସାୟିକ ମଞ୍ଚ ବହୁଭାବେ ତାଙ୍କର ଉପଭୋକ୍ତାଙ୍କୁ ପ୍ରଭାବିତ କରିବାକୁ ପ୍ରୟାସ କରୁଛନ୍ତି। ଲବ୍ଧପ୍ରତିଷ୍ଠିତା ଏହି ଆପେକ୍ଷିକ ନେଟୱାର୍କ ସମାଜରେ ବଞ୍ଚୁଥିଲେ ବି ଏହାକୁ ଛାଡ଼ିପାରୁନାହାଁନ୍ତି । ଅତଏବ ଡିଜିଟାଲ୍ ଗଣମାଧ୍ୟମଦ୍ୱାରା ତିଆରି ହୋଇଥିବା ନୂତନ ଉପସଂସ୍କୃତି (Sub-culture) ର ନିୟନ୍ତ୍ରଣକୁ ଆମ ଭାଷା ଓ ସଂସ୍କୃତିର ସ୍ୱରୂପ ଓ ଭବିଷ୍ୟତ ଦୂରକୁ ଦୂରକୁ ଚାଲିଯାଉଛି ।

### ସହାୟକ ଅନୁସୂଚୀ


1. Daniel Miller & et el, 'Definitions of social media', Academic Studies of Social media, 'How the World Changed Social Media', UCL Press, 2016; Page 1; ISBN:978-1-910634-51-6; https://discovery.ucl.ac.uk/id/eprint/1474805/1/How-the-World-Changed-Social-Media.pdf
2. Daniel Miller & et. all., 'Definitions of social media', Academic Studies of Social media, 'How the World Changed Social Media', UCL Press, 2016; Page 11; ISBN:978-1-910634-51-6; https://discovery.ucl.ac.uk/id/eprint/1474805/1/How-the-World-Changed-Social-Media.pdf
3. Divya Singh N, Dr. N Guruprasad, 'Impact of Social Media on Youth', Proceedings of Second International Conference on Emerging Trends In Science & Technologies For Engineering Systems (ICETSE-2019), SJC Institute of Technology, Chickballapur, Karnataka, India, 17th and 18th May 2019; https://papers.ssrn.com/sol3/papers.cfm?abstract_id=3506607
4. Now trending: Regional Indian language social media networks, Hindustan Times, February 14, 2016, URL: http://www.hindustantimes.com/more-lifestyle/now-trending-regional-indian-language-social-media-networks/story-DObjK5OD84L3adFBKPkOTL.html
5. https://www.youtube.com/watch?v=kYXtpt6F2JY
6. Odia Bhagabata gets eminent on social media;http://reportodisha.com/odia-bhagabata-gets-eminent-on-social-media/
7. ଶତପଥୀ, କବି; 'ଶବ୍ଦର ଆକାଶ ଦୃଶ୍ୟର ଦିଗ୍‌ବଳୟ', ପ୍ରକାଶକ: ଈଶା ଇପ୍‌ସିତା ଶତପଥୀ, କଟକ
8. Albert Bandura, 'Social Learning Theory', Stanford University, https://cogs.sitehost.iu.edu/spackled/2012readings/bandura.pdf
9. Sanel Hadžiahmetovic-Jurida, 'Some distinctive lexical features of Net-Speak'Faculty of Philosophy, University of Tuzla, UDC 811.111'276.6:004.7, Jezikoslovelje, 8.2(2007): 193-210
10. Odia Bhagabata gets eminent on social media; http://reportodisha.com/odia-bhagabata-gets-eminent-on-social-med